ଚୌଷଠି ଯୋଗ ମୁହିଁ ଜାଣ । ତୁ ଏବେ ନ ଡର ହେ ପୁଣ ।
ମୋତେ ଯେ ଚିହ୍ନି ନ ପାରଇ । ମୋ ମାୟା ତାକୁ ଯେ ଘାରଇ ।
ଭକତ ଯୋଗ ସାଧ କର । ମୋ ମାୟା ହୋଇଯିବୁ ପାର ।
ଭକତ ଯୋଗ ତୁ ସାଧିଲେ । ଯୁଗଯୁଗାନ୍ତେ ଥିବୁ ଭଲେ ।
ଅଜର ଅମର ତୁ ହେବୁ । ଯେବେ ତୁ ଏ ଯୋଗ ସାଧିବୁ ।
ନାନା ଯୋଗଟି ମୁଁ ହୋଇଛି । ନାନା ଭଜନ ମୋର ଅଛି ।
ନାନା ମନ୍ତ୍ର ଯନ୍ତ୍ରଟି ମୁହିଁ । ନାନା ତୀର୍ଥଟି ମୁଁ ହୋଇ ।
ନାନା ଔଷଧି ମୁହିଁ ହେଲି । ତେତେ ମୁଁ ବୁଝାଇ କହିଲି ।
ଏ ସବୁ ସତ୍ୟ ତୁ ନ ମଣ । ମୋ ମାୟା ବୋଲି ସବୁ ଜାଣ ।
ଏ ସବୁ ମାୟାର ସଂସାର । ଭକତଭାବ ତତ୍ତ୍ୱ ସାର ।
ମୋ ନାମ ହୃଦେ ଦୃଢ଼ କର । ସବୁ ଦେଖିବୁ ଏକାକାର ।
କହଇ ଅରକ୍ଷିତ ଦାସ । ମଣ୍ଡଳମଣ୍ଡଳ ଗୀତାରସ ।
ଅହେ ସୁଜନମାନେ ମୁହିଁ । ଶୁଣିଚିହ୍ନରେ ଯେ ଭ୍ରମଇ ।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମଣ୍ଡଳମଣ୍ଡଳଗୀତା କଥନେ
ନାମ ଦଶମୋଽଧ୍ୟାୟଃ ।

---

## ଏକାଦଶ ଅଧ୍ୟାୟ

ଅହେ ଚୈତନ୍ୟ ଶୁଣ କହୁ । ଶୁଣିଚିହ୍ନରେ ଥାଇ ମୁହିଁ ।
କେତେକ ଅନ୍ୟାୟ ମୁଁ କଲି । ତୁମ୍ଭର ସେବା ମୁଁ ଛାଡ଼ିଲି ।
ଏକାନ୍ତ ହୋଇବି ବୋଲି ଶୁଣି । ବିଚାର କଲି ମନେ ମନ ।
ସେ ମନ ତୁମ୍ଭ ହରି ନେଲ । ମାୟା ମୋହରେ ନାଶ କଲ ।
ନିର୍ଦ୍ଦୋଷୀ ଜୀବକୁ ମାରିଲି । ଗୁମ୍ଫା ଗୁଡ଼ାଏ ତୋଳାଇଲି ।
ଲତା, ବୃକ୍ଷ ଗୁଡ଼ାଏ ହାଣି । ଅପରାଧ ଅର୍ଜିଲି ମୁଁ ପୁଣି ।
ପାଷାଣ ଗୁଡ଼ାଏ କଟାଇ । ଲୋକଙ୍କୁ ବଡ଼ କଷ୍ଟ ଦେଇ ।

ନିଷ୍ଟୟ କିଛି ନ ଜାଣିଲି । ତୋର ମାୟାରେ ମୁଁ ଭ୍ରମିଲି ।
ତୋର ମାୟାରେ ମୁଁ ଭ୍ରମଇ । ସଙ୍ଗତ କେବେ ନ ଘଟଇ ।
ଏବେ କାହିଁତେ ଦୟା କର । ଅଯୁକ୍ତ ନାହିଁ ଯେ ମୋହର ।
ତୁମ୍ଭର ଦୟା ହେଲେ ମୁହିଁ । ଖଣ୍ଡିଚିରକି ଘଡ଼ିବଇଁ ।
ନୋହିଲେ ଘଡ଼ି ନ ପାରିବି । ଅପ୍ରାଧୀ ହୋଇଣ ମରିବି ।
ମିଛ ସତରେ ଘାଣ୍ଟି ହେଲି । ପେଟର ଜ୍ୱାଳା ନ ସହିଲି ।
ଖରା ବରଷା ଶୀତ ମୁହିଁ । ଏହା ତ ସହି ନ ପାରଇ ।
କ୍ଷୁଧା ତୃଷା ଯେ ନିଦ୍ରା ଭୟ । ଚୌଷଠି ରୋଗ ଅଛି ଦେହ ।
ଏ ସର୍ବେ ମୋତେ ଯେ ବାନ୍ଧିଲେ । ତୋର ଭକତି ଛଡ଼ାଇଲେ ।
ଏହାଙ୍କ ସଙ୍ଗେ ବଶ ହେଲି । ତୋତେ ମୁଁ ଜାଣି ନ ପାରିଲି ।
ତୁହି ତ ମୋତେ ମାୟା କଲୁ । ପାପ ପୁଣ୍ୟରେ ପକାଇଲୁ ।
ମୋହର କିଛି ଦୋଷ ନାହିଁ । ମୋତେ ନିର୍ଦ୍ଦୟ କଲୁ ତୁହି ।
ତୋହର ଦୟା ଯେବେ ହୋନ୍ତା । ଏ କର୍ପା ଗ୍ରାମରେ ରହନ୍ତା ।
ତୁଦ୍ରୁତ ମୋତେ ବାନ୍ଧିଅଛୁ । ସର୍ବ ପ୍ରକୃତ ଯେ ହୋଇଛୁ ।
ତୋ ବିନୁ ଏ ଦେହରେ କେହୁ । ନାହାନ୍ତି ବାରେ ମୁଁ ଜାଣଇ ।
ଜଳ ପବନ ଅଗ୍ନି ହେଲି । ରକତ ମାଂସ ହାଡ଼ କଲି ।
ଏ ତିନିରୁଁ ସର୍ବଜାତ । ଏ ତିନି ସର୍ବଙ୍ଗରେ ହତ ।
ଏ ତିନି ଜାଅନ୍ତି ମରନ୍ତି । ତିନି ଭୁବନ ହୋଇଛନ୍ତି ।
ଏହି ତିନିଙ୍କୁ କେ ମରଇ । ଏହା ଜାଣନ୍ତା କେହି ନାହିଁ ।
ତୁହି ସୁଦୟା ଯାବେ କରୁ । ଜନ୍ମ ମୃତ୍ୟୁରୁ ତାରୁ ତାରୁ ।
ନୋହିଲେ ଗତି ଅନ୍ୟ ନାହିଁ । ପାପ ପୁଣ୍ୟରେ ସେ ମରଇ ।
ପାପ ପୁଣ୍ୟଙ୍କୁ ଏକ କଲେ । ସେ ପିଣ୍ଡ ନାଶ ନୋହେ ଭଲେ ।
ପାପରେ ଯେତୁ ଜାତ ହେଲୁ । ପୁଣ୍ୟଟି ଜଗତେ ଘୋଟିଲୁ ।
ପାପକୁ ବେଗେ ଅଗ୍ରେ କର । ପୁଣ୍ୟକୁ ଘେନି ସଙ୍ଗତର ।
ଏ ବୁଝ ଏକ ବୋଲି ମୁହିଁ । ନ ଜାଣେ ତୋର ମାୟାହୋଇ ।

ଏ ଭୁଲ ଏକ ମନେ କଲି । ତୋତେ ମୁଁ ଛାଡ଼ି ନାଶ ହେଲି ।
ତୋହର ଦୟା ଯେବେ ହେବ । ଏ ଦୁଇ ଏକ ଯେ କରିବ ।
ନୋହିଲେ ଟଳିବେ ସଙ୍ଗ ନାହିଁ । ଭଜାଭଜନ କର ସରଇ ।
ଭଜାଭଜନଟି କରେ ଏହୁ । ତୋତେ ପାଇବ ଅବା କାହୁଁ ।
ଯେବେ ସ୍ୱଦୟା ତୁମ୍ଭେ କର । କିଛି ନ ମାଗଇ ପ ମର ।
ରଖିଲେ ରଖ ମୁଁ ଜାଣିଲି । ତୁମ୍ଭ ବ୍ୟତୀତ କେ ଅଛଇ ।
ଦୁର୍ଲ୍ଲଭ ଶରୀର ପାଇଲି । ଏହାକୁ ଏହି ନ ଚିହ୍ନିଲି ।
ଏହାକୁ ଏହୁ ଯେ ଚିହ୍ନିଲେ । ଏ ଦେହ ରହନ୍ତା ଯେ ଭଲେ ।
ଏହାକୁ ଏହୁ ନ ଚିହ୍ନଇ । ଖୋଜିଲେ ପାଇବଟି କାହିଁ ।
କାଷ୍ଠ ପାଷାଣ ରୁଦ୍ରାକ୍ଷରେ । ଖୋଜିଲେ ନାହିଁଟି ତହିଁରେ ।
ମନ୍ତ୍ର ଯନ୍ତ୍ର ଧ୍ୟାନରେ ନାହିଁ । ତୀର୍ଥ ବ୍ରତରେ ସେହୁ କାହିଁ ।
ଜଳ ଅହାର ନାହିଁ ଜାଣ । କ୍ଷୀର ପବନ କାହୁଁ ପୁଣି ।
ଗୁମ୍ଫା ଭିତରେ ପଶି ରହୁ । ତୋତେ ପାଇବ କାହିଁ ସେହୁ ।
ଜଳଗ୍ନ ହୋଇ ଭ୍ରମୁଥାଇ । ବଚନ କାହାକୁ ନ କହୁ ।
ସେହୁଟି ଅନଙ୍ଗ ଅଟଇ । ତୋତେ ପାଇବ ଅବା କାହିଁ ।
ଏ ତୋ ବଚନ ମାୟା କଲ । ନାନା କର୍ମରେ ଭୁଲାଇଲ ।
ତେଣୁଟି ଅଜ୍ଞାନ ହୋଇଲେ । ନାନାଦି ଦେବତା ପୂଜିଲେ ।
ତେଣୁ ହୋଇଲେ ଅଳ୍ପାୟୁଷ । ତୋତେ ନ ସେବି ଗଲେ ନାଶ ।
ମୁଁ ଏବେ କଥାଏ ମାଗୁଛି । ଦିଅ ବା ନ ଦିଅ କହୁଛି ।
ଦୟାଟି ମୋରେ ଯେବେ ଥିବ । ଭକତି ଯେ ଗ ମୋତେ ଦେବ ।
ଏ ବିନୁ ଅନ୍ୟ ନ ମାଗଇ । ନ ଦେଲେ ବେଗେ ନାଯୋଇ ।
ସଂସାରେ ଏହୁ କମା ଥିବ । ନାନା କଷ୍ଟଟି ସେ ପାଇବ ।
ଏ ଯେତେକ ପ୍ରକୃତମାନେ । କଷ୍ଟ ଦିଅନ୍ତି ଅନୁଦିନେ ।
ଏହାଙ୍କ ଦାଉ କେ ସହିବ । ଦେହ ଛାଡ଼ିଲେ ସବୁ ଯିବ ।
କହଇ ଅରକ୍ଷିତ ଦାସ । ହେ ପ୍ରଭୁ ଖଣ୍ଡ ମାୟା ପାଶ ।

ସୁଜନ ଜନମାନେ ଶୁଣ । ମୋ ଦୋଷ ନ ଘେନିବ ପୁଣ ॥
ଏ ମହାମଣ୍ଡଳେ ଭ୍ରମିଲି । ପ୍ରଭୁଙ୍କ ସେବା ନ ପାରିଲି ॥

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା କଥନେ ନାମ ଏକାଦଶୋଽଧ୍ୟାୟଃ ।

---

## ଦ୍ୱାଦଶ ଅଧ୍ୟାୟ

ହେ ଦେବଦେବ ଚୈତନ୍ୟ । ତୁମ୍ଭ ବ୍ୟତୀତ ଏହି ମନ ॥
ଅନ୍ୟ କାହାକୁ ନ ସେବଇ । ହେ ଦେବଦେବ ଭବଗ୍ରାହୀ ॥
ହେ ଦେବଦେବ ଜଗତ୍କର୍ତ୍ତା । ହେ ଦେବଦେବ ଜଗତ୍ପିତା ॥
ହେ ଦେବଦେବ ବ୍ରହ୍ମାଶିବ । ହେ ଦେବଦେବ ସର୍ବ ଦେବ ॥
ହେ ଦେବଦେବ ବିଷ୍ଣୁ ତୁହି । ତୋହର ରୂପ ବର୍ଣ୍ଣ ନାହିଁ ॥
ହେ ଦେବଦେବ ଶୂନ୍ୟନାଥ । ତୋର ଶରୀରୁ ଏ ଜଗତ ॥
ହେ ଦେବଦେବ ଶୂନ୍ୟଦେହୀ । ସକଳ ଘଟେ ଅଛୁ ରହି ॥
ହେ ଦେବଦେବ ମହାପ୍ରଭୁ । ତିନିଭୁବନେ ତୋର ସ୍ଥିତି ॥
ହେ ଦେବଦେବ ମହାପର । ପୂରି ରହିଛୁ ପରାପର ॥
ହେ ଦେବଦେବ ତୋ ମହିମା । କେହି ନ ଜାଣେ ତୋର ସୀମା ॥
ହେ ଦେବଦେବ ଅନ୍ତର୍ଯାମୀ । ସବୁରି ମନ ତୁମ୍ଭେ ଜାଣି ॥
ହେ ଦେବଦେବ ଭଗବାନ । ଜଳରୂପରେ ତୋ ଭିଆଣ ॥
ହେ ଦେବଦେବ ଦାଶରଥି । ପବନ ରୂପେ ତୋର ସ୍ଥିତି ॥
ହେ ଦେବଦେବ ନାରାୟଣ । ଅଗ୍ନି ରୂପରେ ତୋ ଭିଆଣ ॥
ହେ ଦେବଦେବ ଚନ୍ଦ୍ର ତୁହି । କାଳରୂପରେ ନାଶ ମହୀ ॥
ହେ ଦେବଦେବ ନିରଞ୍ଜନ । ସୂର୍ଯ୍ୟ ରୂପରେ ତୋ ପାଳନ ॥
ହେ ଦେବଦେବ ମୃତ୍ୟୁକାଳ । ନାଶ କରୁନା ତୁ ସକଳ ॥
ହେ ଦେବଦେବ କଳ୍ପଦ୍ରୁମ । ପାପ ପୁଣ୍ୟରେ ତୋ ଅଗମ ॥
ହେ ଦେବଦେବ ହୃଷୀକେଶ । ସ୍ୱର୍ଗ ନରକେ ତୋର ବାସ ॥

ହେ ଦେବଦେବ ଘନଶ୍ୟାମ । ଧର୍ମ ଅଧର୍ମେ ତୋ ବିଶ୍ରାମ ।
ହେ ଦେବଦେବ ନିରାକାର । ସୁର ଅସୁରେ ତୋ ବିହାର ।
ହେ ଦେବଦେବ ସର୍ବ ତୁହି । ତୋ ବିନୁ ଅନ୍ୟ ନାହିଁ କେହି ।
ହେ ଦେବଦେବ ଖେଳ ତୋର । ଅନେକ ରୂପ ତୋ ଶରୀର ।
ହେ ଦେବଦେବ ଜୀବ ତୁହି । ସର୍ବ ଘଟରେ ପୂରି ରହି ।
ହେ ଦେବଦେବ ତୁ ପରମ । ସର୍ବ ଘଟରେ ତୋ ବିଶ୍ରାମ ।
ହେ ଦେବଦେବ ଜଗନ୍ନାଥ । ହେ ଦେବଦେବ ଜଗତ୍ପତି ।
ହେ ଦେବଦେବ ବ୍ରହ୍ମ ତୁହି । ତୋଠାରୁ ସର୍ବେ ପଡ଼ି ପାଇ ।
ଛପନକୋଟି ଜୀବ ଯେତେ । ତୋହର ଶରୀରୁ ଏ ସମସ୍ତେ ।
ଜଡ଼ା ବୁଡା ଯେ ତୁହି ହୋଇ । ଚଳ ନିଚଳ ତୋର ଦେହି ।
ଏ ସପ୍ତପୁର ବ୍ରହ୍ମାଣ୍ଡରେ । ପୂରିଛୁ ଜୀବ ଈଜୀବରେ ।
ତୋହର ରୂପ ବର୍ଣ୍ଣ ନାହିଁ । ଅଜ୍ୟୋତି ଅବର୍ଣ୍ଣ ଯେ ତୁହି ।
ହେ ଦେବ ପୁରାଣପୁରୁଷ । ତୋହର ମହିମା ଅଶେଷ ।
ଭକତ ଲକ୍ଷଣ ନ ସହି । ରୂପ ଯେ ଧରୁ ଭାବଗ୍ରାହୀ ।
ନୋହିଲେ ରୂପ ନାହିଁ ତୋର । ମହାଶୂନ୍ୟରେ ତୋ ବିହାର ।
ହେ ଦେବ ସର୍ବଜ୍ଞ ପୁରୁଷ । ତୋତେ ନ ସେବି ଗଲୁ ନାଶ ।
ହେ ଦେବ ଶରଣ ମୋହର । ଅନ୍ୟ ଭରସା ନାହିଁ ମୋର ।
ହେ ପ୍ରଭୁ ଦୟାଶୀଳ ତୁହି । ନିର୍ଦ୍ଦୟ ହେଲୁ ଭାବଗ୍ରାହୀ ।
ହେ ପ୍ରଭୁ ପତିତପାବନ । ତାରିଲେ ତାର ତୁ ବଦନ ।
ନୋହିଲେ ଦେହ ଛାଡ଼ିଯାଉ । ଶୂନ୍ୟରେ ଶୂନ୍ୟ ହୋଇ ରହୁ ।
ହେ ଦେବଦେବ ସତ୍ୟ ତୁହି । ଏ ଦେହେ କିଛି କାର୍ଯ୍ୟ ନାହିଁ ।
ଏ ଦେହ ଛାଡ଼ି ମୁହିଁ ଯିବି । ତୋ ଦେହେ ଯାଇ ସମ୍ପାଇବି ।
ଏ ଦେହେ ଅଜ୍ଞାନ ମୁଁ ହୋଇ । ତୋତେ ଯେ ଚିହ୍ନି ନ ପାରଇ ।
ଏହି ଦେହରୁ ମୁହିଁ ଗଲେ । ତୋ ଅଙ୍ଗେ ମିଶିବଇଁ ଭଲେ ।
ଏ ଦେହେ କିଛି ନ ଜାଣିଲି । ପାପ ପୁଣ୍ୟରେ ଘାଣ୍ଟି ହେଲି ।

ହେ ଦେବଦେବ ଅନ୍ତର୍ଯାମୀ । କଥା ଏ ମାଗୁଅଛୁ ପୁଣି ।
ହେ ଦେବଦେବ ଭକ୍ତ ଦଅ । ନୋହିଲେ ଦେହ ଛାଡ଼ିଯାଅ ।
ଏ ମହ୍ମାମଣ୍ଡଳରେ ମୁହିଁ । ତୁମ୍ଭେ ଯେ ଥିବ କାହିଁପାଇଁ ।
ଏ ମହ୍ମାମଣ୍ଡଳେ ନ ଥିବ । ଅକ୍ଷୟ ବ୍ରହ୍ମରେ ମିଶିବ ।
ଏହି ଦୟା ତୁ ମୋତେ କର । ଜଣାଉଅଛୁ ବାରମ୍ବାର ।
କହଇ ଅଚ୍ୟୁତ ଦାସ । ମହ୍ମାମଣ୍ଡଳ ଗୀତା ରସ ।
ସୁଜନ ଜନମାନେ ଶୁଣ । ଏତେ ରୂପରେ ମୋ ଭ୍ରମଣ ।
ଅଜ୍ଞ ଏଣିକି କି କରିବ । ସେ କଥା ଜାଣେ ବାସୁଦେବ ।
ଖଣ୍ଡିଦିବରେ ମୁହିଁ ବହି । ମହ୍ମାମଣ୍ଡଳ ଗୀତା କହି ।

ଇତି ଶ୍ରୀ ମନ-ଚୈତନ୍ୟ ସମ୍ବାଦେ ମହ୍ମାମଣ୍ଡଳ ଗୀତା କଥନେ
ନାମ ଦ୍ୱାଦଶୋଽଧ୍ୟାୟଃ । ୧୨ ।

---

## ତ୍ରୟୋଦଶ ଅଧ୍ୟାୟ

ଅହେ ଚୈତନ୍ୟ ଶୁଣ ତୁହି । କିସ ମାଗିବି ତୋତେ ମୁହିଁ ।
ଅହେ ଚୈତନ୍ୟ ଅନ୍ତର୍ଯାମୀ । ସବୁରି ମନ ତୁମ୍ଭେ ଜାଣି ।
ଅହେ ଚୈତନ୍ୟ ଭଗବାନ । ଭକତି ଯୋଗ କର ଦାନ ।
ଅହେ ଚୈତନ୍ୟ ବାସୁଦେବ । ଭକତି ଯୋଗ ମୋତେ ଦେବ ।
ଅହେ ଚୈତନ୍ୟ ତୁ ଈଶ୍ୱର । ଭକତି ମାଗୁଛୁ ପାମର ।
ଅହେ ଚୈତନ୍ୟ ବ୍ରହ୍ମ ତୁହି । ଭକତି ଯୋଗ ଦଅ କହି ।
ଅହେ ଚୈତନ୍ୟ ବସ୍ତୁ ଶୁଣି । ଭକତି ମାଗୁଅଛୁ ପୁଣି
ଏହେ ଚୈତନ୍ୟ ଜଗତ୍‌କର୍ତ୍ତା । ଭକତି ଦଅ ତୁହି ଦାତା ।
ଅହେ ଚୈତନ୍ୟ ସର୍ବଦେହୀ । ଭକତି ଯୋଗ ଦଅ କହି ।
ଅହେ ଚୈତନ୍ୟ କଳ୍ପଦ୍ରୁମ । ଭକତି ମାଗୁଅଛୁ ହୀନ ॥
ଅହେ ଚୈତନ୍ୟ ରଘୁନାଥ । ଭକତି ମାଗୁଅଛୁ ନିତ୍ୟ ॥

ଅହେ ଚୈତନ୍ୟ ଚକ୍ରଧର । ଭକତ ମାଗୁଛି ନିକର ।
ଅହେ ଚୈତନ୍ୟ ଭୂଷାବେଶ । ଭକତ ଦିଅ ପୀତବାସ ।
ଅହେ ମହିମା ମହାବାହୁ । ଭକତ ଯୋଗ ଆଜ୍ଞା ହେଉ ।
ଅହେ ବ୍ରହ୍ମାଣ୍ଡର ଠାକୁର । ଭକତ ମାଗୁଛି ପାମର ।
ଅହେ ହେ ଅନନ୍ତ ଶୟନ । ଭକତ ଯୋଗ ଦିଅ ପୁଣ ।
ଅହେ ଚକ୍ରବର୍ତ୍ତିର ଦାଣୀ । ଭକତ ଯୋଗ ଦେବ ସ୍ୱାମୀ ।
ଅହେ ହେ ଅନନ୍ତ ମୂରତି । ଭକତ ଦିଅ ପ୍ରାଣପତି ।
ତୁହି ଭକତଯୋଗ ଧର । ସକଳ ଘଟେ ଅଛୁ ପୂର ।
ତୋ ବିନୁ ଭେଦ ନ ଜାଣନ୍ତି । ବ୍ରହ୍ମା ଶିବହିଁ ଭ୍ରମିହୋନ୍ତି ।
ଅଉ କେ ଜାଣିବ ସଂସାରେ । ଏ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ ।
ନାନା ତପସ୍ୱିମାନ କଲେ । ତୋର ଭକତ ନ ଜାଣିଲେ ।
ଭକତ ଗୃପତେ ବହୁଛି । ତୋ ମାୟା ଘୋଟି ଯେ ମାରୁଛି
ତୋହର ନିଜ ଧର୍ମ ତୁହି । ତାହାକୁ ନ ଦେଲୁଟି କହି ।
ସ୍ୱଭାବେ ଦୁର୍ଗମ ଭଜନ । ଦୟା ତୁ କର ମୋତେ ପୁଣ ।
ଏ ବିନୁ ଅନ୍ୟ ନ ମାଗଇ । ଭକତଯୋଗ ଦିଅ କହି ।
ଭକତଯୋଗ ତୋତେ ଦେବୁ । ଯେବେ ତୁ ସଂସାରୁ ତରିବୁ ।
ନୋହିଲେ କେବେଁ ଗତି ନାହିଁ । ସଂସାରେ ଥିବୁ କାହିଁପାଇଁ ।
ରଖିଲେ ଭକ୍ତି ମୋତେ ଦିଅ । ନୋହିଲେ ଦେହ ଛାଡ଼ିଯାଅ ।
ମୋହର କିଛି ଦୋଷ ନାହିଁ । ଦିଅ ବା ନ ଦିଅଟି କହି ।
ଏ ମହିମଣ୍ଡଳେ ଭ୍ରମିଲି । ତୋର ମାୟାକୁ ସତ୍ୟ କଲି ।
ଏ ମାୟା ବେଗେ ଦୂରକର । ଜଣାଉଅଛି ମୁଁ ଘମୁର ।
ଖଣ୍ଡଗିରିରୁ ବେଗେ ନିଅ । ଭକତ ଯୋଗ ମୋତେ ଦିଅ ।
ଏ ବିନୁ ଅନ୍ୟ ନ ମାଗଇ । ଏକାନ୍ତେ ଭଜୁଥିବି ମୁହିଁ ।
ତୁମ୍ଭର ନାମ ସଙ୍ଗେ ଘେନି । ଭକତ ସାଧୁଥିବି ପୁଣି ।
ଏହି ଦୟା ଯେ ତୁମ୍ଭେ କର । କ୍ଷୁଧା ତୃଷାକୁ ମୋର ମାର ।

କହଇ ଅରକ୍ଷିତ ଦାସ । ମହାମଣ୍ଡଳ ଗୀତା ରସ ।
ଆହେ ସୁଜନମାନେ ଶୁଣ । ଏ ଗୀତା ଭଲ ମୁଁ ବଖାଣ ।
ଏଥିରେ ଯେତେ ଦୋଷ ମୋର । କ୍ଷମା କରିବେ ରସଧର ।
ଭକତ ଯୋଗରେ ମୋ ଅଣ । ସୁଜନେ ନ ଘେନିବ ଦୋଷ ।

ଇତି ଶ୍ରୀ ମନ-ଚୈତନ୍ୟ ସମ୍ବାଦେ ମହାମଣ୍ଡଳଗୀତା କଥନେ
ନାମ ତ୍ରୟୋଦଶୋଽଧ୍ୟାୟଃ । ୧୩ ।

---

## ଚତୁର୍ଦ୍ଦଶ ଅଧ୍ୟାୟ

ଆହେ ଚୈତନ୍ୟ ଶୁଣ ତୁହି । କ୍ଷୁଧା ତୃଷା ମୋ ନ ଛାଡ଼ଇ ।
କ୍ଷୁଧା ତୃଷା ଯେ ଘୋଟି ଅଛି । ଭୟ କରାଇ ଯେ ମାରୁଛି ।
ହିଂସା ମାୟା ମୋହ ସଙ୍ଗରେ । ତୁ ଭ୍ରମାଇଲୁ ଏ ସଂସାରେ ।
ତୁହି ଯେ ସତ୍ତ୍ୱ ରଜ ତମ । ଲୋଭ କାମ ଯେ ତୁହି ଭ୍ରମ ।
ପଞ୍ଚମନ ଯେ ତୁହି ଜାଣ । ପଚିଶ ପ୍ରକୃତି ଯେ ପୁଣ ।
ଷଡ଼ଉର୍ମି ଯେ ତୁହି ହେଲୁ । ଚୌଷଠି ବେଗରେ ନାଶିଲୁ ।
ତୋ ବିନା ଦେହରେ କେ ରହି । ନାଶୁଛୁ ମୋର ଦୋଷ ନାହିଁ ।
ସର୍ବ ପ୍ରକୃତି ତୁମ୍ଭେ ହେଲ । ସଂସାର ଯାକରେ ଘୋଟିଲ ।
ତୋ ବିନା ବ୍ରହ୍ମାଣ୍ଡ ଭିତରେ । ଅଛି କେ କହିଲି ମୁଁ ତୋରେ ।
ସପ୍ତ ସମୁଦ୍ର ହୋଇଛିଲୁ । ନବଖଣ୍ଡ ମେଦିନୀ ହେଲୁ ।
ଗିରି ପର୍ବତ ତୁହି ଜାଣ । ବୃକ୍ଷ ପାଷାଣ ହେଲୁ ପୁଣ ।
ଖାଲ ଢିପର ନଦୀ ନାଳ । ଏ ତୋର ଶରୀରୁ ସକଳ ।
କୀଟ ପତଙ୍ଗ ତରୁ ତୃଣ । ତୋହର ଶରୀରୁ ଉଣା ।
ଛପନ କୋଟି ଜୀବ ଯେତେ । ତୋର ଶରୀରୁ ଏ ସମସ୍ତେ ।
ପୃଥ୍ୱୀ ଯେ ଅକାଶ ମଣ୍ଡଳ । ତୋହର ଶରୀର ସକଳ ।
ଜଳ ପବନ ଅଗ୍ନି ହୋଇ । ତୋର ଶରୀରୁ ଜାତ ହୋଇ ।

ମେଘ ଜନ୍ମବ ତୋ ଶରୀରୁ । ବିଜୁଳି ତେଜ ତୋ ଦେହରୁ ।
ହେ ପ୍ରଭୁ ଜ୍ୟୋତିରୂପ ଧର । ଜେତେ ଭଙ୍ଗିରେ ଲୀଳାତୋର ।
ମନ୍ଦ ଯନ୍ତ ଯେ ତୁମ୍ଭ ହେଲି । ଗୁହ୍ୟ ପୁଷ ଯେ ବୋଲାଇଲି ।
ଚଣ୍ଡୀ ଗ୍ରହମଣ୍ଡୀ ଭୂତ ପ୍ରେତ । ତୋର ଶରୀରୁ ସର୍ବେ ଜାତ ।
ଏ ସର୍ବ ତୋର ତନୁଁ ଜାତ । ଭୂଷଣ ହୋଇଅଛୁ ତୁ ତ ।
ନାନାଦି ପକ୍ୱଫଳ ତୁମ୍ଭ । ନାନାଦି ଭୋଗ ତୋର ଦେଖି ।
ନାନାଦି ପୁଷ୍ପ ତୁମ୍ଭେ ହେଲ । ନାନାଦି ନାମ ପ୍ରକାଶିଲ ।
କାଷ୍ଠରେ ଅଗ୍ନି ରୂପେ ରହ । ତିଳରେ ତୈଳରୂପ ତୁମ୍ଭ ।
ଏକା ପୁରୁଷ ସର୍ବ ହେଲି । ଜେତେ ରଙ୍ଗରେ ଲୀଳା କଲି ।
ତ୍ରିଶ ପୁରୁଷ ହେଲି ତୁମ୍ଭ । ଜାତ କରିଲି ସର୍ବ ଦେଖି ।
ଏ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ । ତୋ ତନୁଁ ଅନ୍ୟ ନାହିଁ ପରେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତୁମ୍ଭ । ତୋର ଶରୀରୁ ଜାତ ହୋଇ ।
ଆକାଶ ମହାଶୂନ୍ୟ ହେଲି । ଏ ଅନ୍ଧକାର ଯେ ଘୋଟିଲି ।
ତେତିଶକୋଟି ଦେବ ତୁମ୍ଭ । ନକ୍ଷତ୍ରଗଣ ତୁମ୍ଭେ ହୋଇ ।
ଅନନ୍ତ କୋଟି ସାଧୁ ହେଲ । ପୁରାଣମାନ ତୁମ୍ଭେ କଲ ।
ଅକ୍ଷରମାନ ହେଲି ତୁମ୍ଭ । ନକ୍ଷତ୍ରଗଣ ତୁମ୍ଭେ ହୋଇ ।
ଯାହାକୁ ଯେମନ୍ତ ଶବଦ । ଅକ୍ଷର ଲାଗି ତୁ ଯେ ନାଦ ।
ଅକ୍ଷର ଶବଦ ଭିତରେ । ସେନା ରହିଛୁ ଚରାଚରେ ।
ଅଣଅକ୍ଷରେ ଜାତ ତୁମ୍ଭ । ନାମ ଅନାମ ତେବେ ଦେଖି ।
ସଂସାରେ ଯେତେ ଜାତ କଲି । ସମସ୍ତ ନାମ ତୁମ୍ଭ ଦେଲି ।
ଏକ ନାମଟି ଭିନ୍ନ ଭିନ୍ନ । ଧରି ଯେ ଅଛୁ ତୁମ୍ଭ ପୁଣି ।
ସଂସାରେ ଖେଳିବାର ପାଇଁ । ଜେତେ ରୂପ ଯେ ଧରୁ ତୁମ୍ଭ ।
ଛପନକୋଟି ଜୀବ ହେଲି । ଭିନ୍ନ ଭିନ୍ନ ରୂପ ଧରିଲି ।
ମେରୁ ଆଦି ଯେତେ ପର୍ବତ । ତୋର ଶରୀରୁ ଏ ସମସ୍ତ ।
କାକରୁ ଗରୁଡ଼ ପର୍ଯ୍ୟନ୍ତେ । ତୋର ଶରୀରୁ ଏ ସମସ୍ତେ ।

ଚଣ୍ଡାଳୁ ବ୍ରହ୍ମପାଏ ଜାଣ । ତୋର ଶରୀରୁ ଏ ଭଅଣ ॥
ବାସବ ଆଦି ଯେତେ ଦେବ । ତୋର ଶରୀରୁ ଏ ସମ୍ଭବ ।
କୀଟରୁ ବ୍ରହ୍ମପାଏ ଭୂହ । ଜାତ ହୋଇଛୁ ସର୍ବ ଦେହୀ ।
ନିଚଳ ଚୌଦ କୋଟି ହୋଇ । ତୋର ଶରୀରୁ ଜାତ ହୋଇ ।
ଛପନକୋଟି ଜୀବେ ପୁଣ । ପଡ଼ ଯେ ଦେଉଛ ଅପଣ ।
ଅପଣେ ପଡ଼ରୂପ ହୋଇ । ନିଜରୁ ନିଜେ ନେଉ ଭୁହ ।
ଜୀବକୁ ଜୀବ ଖୁଆଉଛ । ପାପ ପୁଣ୍ୟହିଁ ସବୁ ମିଛ ।
ଜୀବକୁ ଜୀବ ହିଂସା କରୁ । ଜୀବକୁ ଜୀବ ଧରି ମାରୁ ।
ଜୀବକୁ ଜୀବ ଝଟିଥାଇ । ଏମନ୍ତେ ତୋର ମାୟା ହୋଇ ।
ହେ ପ୍ରଭୁ ସକଳ ଶରୀରେ । ପୂରି ରହିଛ ପରିପରେ ॥
ଅକାଶ ମହୀପାଏ ପୂରି । ଜୀବେ ଅଜୀବେ ସମସରି ।
ତେଣୁ ପଡ଼ିବା ଠାବ ନାହିଁ । ସପ୍ତ ବ୍ରହ୍ମାଣ୍ଡେ ପୂରି ରହି ।
ଏମନ୍ତେ କୋଟି ଯେ ରହିଛ । ଉତ୍ପତ୍ତି ପ୍ରଳୟ କରୁଛ ।
ଜାତ ହୋଇଛୁ ଭୁହ ପୁଣ । ମଲେ ମରୁଛୁ ଯେ ଅପଣ ।
ତୋ ମାୟା ଭେଦ ନ ଜାଣନ୍ତି । ପାପ ପୁଣ୍ୟକୁ କଲେ ଭ୍ରାନ୍ତ ।
ଏବେ କାହିଁତେ ଦୟା କରି । ସକଳ ଶରୀରୁ ବାହାରି ।
ସକଳ ସମାନ ଦେଖିବି । ଭକ୍ତି ଯୋଗ ସାଧୁଥିବି ।
ଏହି ସୁଦୟା ମୋତେ କର । ଅନ୍ୟ ଭରସା ନାହିଁ ମୋର ।
କହଇ ଅରକ୍ଷିତ ଦାସ । ଦୋଷ ନ ଧର ପୀତବାସ ।
ସୁଜନଜନଙ୍କ ପୟରେ । ଦୋଷ ମୁଁ ମାଗେ ନିରନ୍ତରେ ।
ସୁଜନେ ଏହି ରସେ ରସ । ନ ଥିବ କାଳ ଦଣ୍ଡ ଫାଶ ।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା କଥନେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ । ୧୪ ।

---

## ପଞ୍ଚଦଶ ଅଧ୍ୟାୟ

ଅହେ ଚୈତନ୍ୟ ଆପେ ବ୍ରହ୍ମ । ଦୁଃଖ ସୁଖରେ ଘାଣ୍ଟି ହୋଇ ।
ନାନାଦ ରୋଗ ବ୍ରହ୍ମ କରୁ । ନାନାଦ କଷ୍ଟ ଦେଇ ମାରୁ ।
ନାନାଦ ଜୀବଜନ୍ତୁ ହେଉ । ନିଜକୁ ନିଜେ ଧର ଖାଉ ।
ନିଜକୁ ନିଜେ ଯେ ଖାଉଛ । ପାପ ପୁଣ୍ୟହିଁ ସବୁ ମିଛ ।
ଧର୍ମ ଅଧର୍ମ ବିଚାର ନାହିଁ । ଶୁଭ ଅଶୁଭ ତୋର କାହିଁ ।
ସ୍ୱର୍ଗ ନରକ ନାହିଁ ପୁଣ୍ୟ । ମିଛ ସତହିଁ ନାହିଁ ଜାଣ ।
ନିଜକୁ ନିଜେ ଛେଦ ହେଲୁ । ନିଜକୁ ନିଜେ ନାଶ କଲୁ ।
ଆପକୁ ଆପେ ପିତା ମାତା । ଆପକୁ ଆପେ ତୁ କରତା ।
ଆପକୁ ଆପେ ବନ୍ଧୁ ହେଉ । ଆପକୁ ଆପେ ଖଟିଥାଉ ।
ଆପକୁ ଆପେ ବନ୍ଧୁ ବାନ୍ଧ । ଆପକୁ ଆପେ ଛନ୍ଦାଛନ୍ଦ ।
ଆପକୁ ଆପେ ଦେବେଶ୍ୱର । ଆପକୁ ଆପେ କନ୍ୟା ବର ।
ଆପକୁ ଆପେ ଶଳା ମାଇଁ । ଆପକୁ ଆପେ ଶାଶୁ ହୋଇ ।
ଆପକୁ ଆପେ ଭାଇବୋହୂ । କେତେ ଭଙ୍ଗେରେ ରହୁଥାଉ ।
ଆପକୁ ଆପେ ଗୃହାକାଣ୍ଡ । ଆପକୁ ଆପେ କାଠୁ ମୁଣ୍ଡ ।
ଆପକୁ ଆପେ ମହାବୀର । ଆପକୁ ଆପେ ତୁ କାତର ।
ଆପକୁ ଆପେ ଗୁରୁ ଶିଷ୍ୟ । ଖଟି ଯେ ଥାଉ ତୋର ପାଶ ।
ଆପକୁ ଆପେ କ୍ଷୁଧା ତୃଷା । ଆପକୁ ଆପେ ତୋ ଭରସା ।
ଆପକୁ ଆପେ ନିଦ୍ରା ଭୟ । ଚୌଷଠି ରୋଗ ତୋର ଦେହ ।
ସୋଡଶ ବାୟୁସ୍ୱ ଯେ ନାଡ଼ୀ । ଆପକୁ ଆପେ ଥାଉ ଜଡ଼ ।
ଆପକୁ ଆପେ ଶିର ଚର୍ମ । ରକ୍ତ ମାଉଁସ ହାଡ଼ ଜାଣ ।
ଆପକୁ ଆପେ ରୋଗୀ ହେଲୁ । କଷ୍ଟ ପାଇଣ ପୁଣି ମଲୁ ।
ଆପେ ମରୁଛୁ ଜୀଉଅଛୁ । ଆପେ ଦେଖିଣ ଶୁଣୁଅଛୁ ।
ଆପେ ବାସନା ଆପେ ଖାଉ । ଆପେ ଦୁର୍ଗନ୍ଧ ବସ୍ତୁ ହେଉ ।
ଆପେ ଅଜ୍ଞାନ ରୂପ ହୋଇ । ଅନ୍ଧକାର ଯେ ଘୋଟିଥାଇ ।

ଥପେ ଯେ ଚନ୍ଦ୍ର ପୂର୍ଣ ହେଲ | ରାଜ ଦିବସ ତୁ ହୋଇଲ |
ଥପଲୁ ଅପେ ଚାହିଁ ରହ | ତେବେ ସଂସାରେ ସୁଖ ପାଅ |
ଥପନ୍ତୁ ଅପେ ଚାହିଁ ରହ | କେବେହେଁ ନ ଯାଇ ଏ ଦେହ |
ଥପଲୁ ଅପେ ଦୟାକର | ଲୀଳା ଦେଖିବୁ ଯେ ତୋହର |
ସବ ଶରୀରେ ମୁଁ ଅଛଇ | ଏହା ଜାଣିଛୁ ପ୍ରଭୁ ତୁହ |
କି ରୂପେ ଲୀଳା ତୁ କରୁଛୁ | ଜଗତ କି ରୂପ ଦେଖିଛୁ |
ଏହା ଦେଖିବ ମୁହିଁ ହୀନ | ଭକତ ଯୋଗ ଦିଅ ପୁଣ |
ଏ ବିନୁ ଅନ୍ୟ ନ ମାଗଇ | ହେ ପ୍ରଭୁ କର ମୋତେ ସାହି |
ଏ ମହାମଣ୍ଡଳ ତୋ ଲୀଳା | କେମନ୍ତେ କରୁଅଛ ଖେଳା |
ଏହା ଦେଖିବାକୁ ମୋ ଆଶ | କହଇ ଅରକ୍ଷିତ ଦାସ |

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳଗୀତା କଥନେ ନାମ ପଞ୍ଚଦଶୋଽଧ୍ୟାୟଃ | ୧୫ |

---

## ଷୋଡ଼ଶ ଅଧ୍ୟାୟ

ମନ ମୁଖରୁ ଏହା ଶୁଣି | ଚୈତନ୍ୟ ମନେ ମନେ ଗୁଣି |
ତୁ ଯାହା କହିଲୁ ହୋ ସତ୍ୟ | ଏ ମୋର ମାୟା ବିମୋହିତ |
ମାୟାକୁ ସତ୍ୟ ତୁ ମଣିଲୁ | ତୁ ମୋତେ ଚାହିଁ ନ ପାରିଲୁ |
ତୁ ମୋର ଜୀବଆତ୍ମା ହୋଇ | ମୋର ସଙ୍ଗତେ ତୁହି ରହ |
କିପାଁ ତୁ ମୋତେ ପାଶୋରିଲୁ | ନାମହିଁ ମୋର ଛାଡ଼ିଦେଲୁ |
ତେଣୁ ମୁଁ ତୋତେ ମାୟାକଲି | ନାନା କର୍ମରେ ଭୁଲାଇଲି |
ଯେଣୁ ମାୟାରେ ତୁ ଭ୍ରମିଲୁ | ତେଣୁ ତୁ ଚାହିଁ ନ ପାରିଲୁ |
ଏବେ ମୁଁ କହୁଅଛୁ ଶୁଣ | ନାମକୁ ଚାହିଁ ଅନୁକ୍ଷଣ |
ମାତା ପିତା ସଙ୍ଗମକାଳେ | ରଜ ବୀର୍ଯ୍ୟ ଏକତ୍ର ହେଲେ |
ସେକାଳେ ତୋତେ କହିଥିଲି | ନାମ ତୁ ଚିନ୍ତ ହୋ ବୋଇଲି |
ତୋତେ ମୁଁ ନାମ ଦୀକ୍ଷା ଦେଇ | ଶୂନ୍ୟରେ ମୁହିଁ ରୁଦ୍ଧ ରହି |

ଗର୍ଭେ ରହିଲୁ ଦଶମାସ । ନାମରେ ଥିଲୁ ତୋ ବିଶ୍ୱାସ ।
ପୃଥ୍ୱୀରେ ପଡ଼ି ପାଶୋରିଲୁ । ହସ କୌତୁକେ ଦିନ ନେଲୁ ।
ଏବେ ତୁ ସେହି ନାମ ଚିନ୍ତ । ମୋ ନାମେ ସକଳ ଅମୃତ ।
ଏହି ଦେହରେ ତୁ ରହିଲୁ । ତୋ ନିଜ ନାମ ପାଶୋରିଲୁ ।
ପ୍ରକୃତିଗଣ ସଙ୍ଗେ ରହି । ଭ୍ରମିଲୁ ମାୟାମତ୍ତ ହୋଇ ।
ଏହାଙ୍କ ପାଞ୍ଚ ତୁ ନ ଜାଣି । ଦେହକୁ ସତ୍ୟପ୍ରାୟ ମଣି ।
ଏ ଦେହ କ୍ଷଣକେଟି ଯିବ । ନାମେ ନିର୍ଗୁଣ ମେଳ ହେବ ।
ନାମକୁ ନିତ୍ୟ ସେବା କର । ଏ ଦେହ ରହିବ ନିକର ।
ନୋହିଲେ ଏ ଦେହ ନ ରହି । ନାମ ଛାଡ଼ିଲେ ପ୍ରାଣ ଯାଇ ।
ନାମକୁ ହୃଦେ ଲକ୍ଷ୍ୟ କର । ତେବେ ହୋଇବୁ ଅଜାମର ।
ଯେ ନାମ ମାତା ଗର୍ଭେ ଥାଇ । ସେ ନାମ ଚିନ୍ତା କର ତୁହି ।
ସଂସାରେ ଯେତେ ନାମ ଜାଣ । ସେ ନାମ ଚିନ୍ତିବୁ ତୁ ପୁଣ ।
ଭକତେ ପିତା ମୋ ଅଟନ୍ତି । କେତେ ନାମଟି ଦେଇଛନ୍ତି ।
ସେ ନାମ ନ ଚିନ୍ତିବୁ ତୁହି । ନିଜ ନାମକୁ ସ୍ମର କହି ।
ନିଜ ନାମ ନ ଜାଣି ମରେ । ନିନ୍ଦା କରନ୍ତି ଏ ସଂସାରେ ।
ଯେ ନାମ ନ ଜାଣନ୍ତି କେହି । ଯେତେ ସଂସାରେ ଦେହ ବହି ।
ସଂସାର ମଧ୍ୟରେ ପ୍ରବଳଛି । ସେ ନାମ ଗୁପତେ ରହିଛି ।
ସେ ନାମ ମୁହିଁ ଜାଣିଥିଲି । ତଜଦଶ୍ୱବଚନ ଘୋଷିଲି ।
ସେ ନାମ ଈଶ୍ୱର ପାଇଲେ । ଅମର ହୋଇଣ ରହିଲେ ।
ସେ ନାମ ବାରିନିଧି ପାଇ । କ୍ଷୟ ବୃଦ୍ଧିଟି ତାର ନାହିଁ ।
ସେ ନାମ ବାସୁକି ଜାଣିଛି । ପୃଥିବୀଭାର ଶିରେ ଅଛି ।
ସେ ନାମ ଚନ୍ଦ୍ର ସୂର୍ଯ୍ୟ ଜାଣି । ରାତି ଦିବସ କଲେ ପୁଣି ।
ସେ ନାମ ବ୍ରହ୍ମାହିଁ ଜାଣନ୍ତି । ସକଳ ସୃଷ୍ଟି ସେ କରନ୍ତି ।
ସେ ନାମ ବିଷ୍ଣୁ ଯେ ଜାଣନ୍ତି । ସକଳ ସୃଷ୍ଟି ସେ ପାଳନ୍ତି ।
ସେ ନାମ ଈଶ୍ୱର ଜାଣିଲେ । ସକଳ ସୃଷ୍ଟି ସଂହାରିଲେ ।

ସେ ନାମ ଯମ ଯେ ଜାଣଇ । ସକଳ ଘଟେ ପ୍ରବର୍ତ୍ତଇ ॥
ସେ ନାମ ଅଗ୍ନି ଜାଣିଛନ୍ତି । ସକଳ ଘଟେ ପୂରିଛନ୍ତି ॥
ସେ ନାମ ପବନ ଜାଣଇ । ସେ ସର୍ବ ଘଟେ ପୂରି ରହଇ ॥
ସେ ନାମ ପୃଥ୍ୱୀ ଜାଣିଛି । ସକଳ ଭାର ସେ ସହୁଛି ॥
ସେ ନାମ ତାରକଣା ଜାଣି । ରାତ୍ର ଦିବସ ଭ୍ରମେ ପୁଣି ॥
ସେ ନାମ ମୁହିଁ ଆଣି ଭଲି । ସର୍ବଦା ଘଟକୁ ଧରିଲି ॥
ସର୍ବ ଘଟରେ ଯେଣୁ ମୁହିଁ । ତେଣୁ ବିଜ୍ଞାନ ମୋର ଦେହୀ ॥
କାପାଁ ଅଜ୍ଞାନ ମୁହିଁ ପୁଣ । ଏବେ କହିବା ତାହା ଶୁଣ ॥
ମୁଁ ଯେବେ ଅଜ୍ଞାନ ନୁହନ୍ତି । ସଂସାରେ କି ଲୀଳା କରନ୍ତି ॥
ସେ ନାମ ଶିବ ଯେ ଜାଣନ୍ତି । ଅମର ହୋଇ ରହିଛନ୍ତି ॥
ତେଣୁ ଅଜ୍ଞାନ ମୁହିଁ ହେଲି । ସଂସାର ଖେଳ ଲଗାଇଲି ॥
ସେ ନାମ ବ୍ରହ୍ମାଣ୍ଡେ ଘୋଟିଛି । ସେହି ନାମକୁ ଭାବୁଅଛି ॥
ନାମ ଜଳ ସ୍ଥଳ ଅନଳ । କେହି ନ ପାନ୍ତି ତାର କୂଳ ॥
ସେହି ନାମକୁ ମୁଁ ଭାବଇ । କ୍ଷୟ ବୃଦ୍ଧି ମୋର ନାହିଁ ॥
ଜଳରେ କେବେ ନ ବୁଡଇ । ଥାଇ ନ ଥାଇ ନ ଦିଶଇ ॥
ଶୁଖଇ ନାହିଁ ମୁହିଁ ଜାଣ । ଖଡ଼ଗେ ନ ଛିଡ଼ଇ ପୁଣ ॥
ଅନଳେ କେବେ ନ ପୋଡ଼ଇ । ପବନେ କେବେ ନ ଉଡ଼ଇ ॥
ସଂସାର ଖେଳ ପାଇ ମୁହିଁ । ଉତ୍ପତ୍ତି ପ୍ରଳୟ କରଇ ॥
ଏବେ ତୁ ସେହି ନାମ ଧର । ସଂସାରେ ହୋଇବୁ ଅମର ॥
ଥଭ କାହାକୁ ଭୟ ନାହିଁ । ସେ ନାମ ଭାବିଲହିଁ ମୁହିଁ ॥
ସେ ନାମ ସର୍ବ ଭାବେ ଅଛି । ଭବଭୟ ଯେ ନାହିଁ କିଛି ॥
ସର୍ବ ସମାନ ଦେଖ ତତେ । ମୁହିଁ ଟି ଅଛି ସର୍ବଭୂତେ ॥
ଏବେ ତୁ ସେହି ନାମେ ରସ । ନମଇ ଅଚ୍ୟୁତ ଦାସ ॥

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା କଥନେ
ନାମ ଷୋଡ଼ଶୋଽଧ୍ୟାୟ । ୧୬ ।

---

## ସପ୍ତଦଶ ଅଧ୍ୟାୟ

ହେ ମନ ଶୁଣ ମୋର ବାଣୀ । ଖଣ୍ଡିବିଷକୁ ଛାଡ଼ ପୁଣି ।
ଏକାନ୍ତ ହୋଇଣ ରହିବୁ । ସେ ନାମ କ୍ଷଣେ ନ ଛାଡ଼ିବୁ ।
ସେ ନାମ ପ୍ରସନ୍ନ ହୋଇବ । ଯେଣେ ଗୃହିଁଲେ ତେଣେ ଥିବ ।
ସର୍ବ ଘଟରେ ନାମ ଦେଖି । ତେବେ ପାଇବୁ ମହାସୁଖ ।
ସେ ନାମ ଦୟା ଯାକୁ କରେ । କ୍ଷୁଧା ତୃଷାହିଁ ରହେ ଦୂରେ ।
ଖର ବରଷା ଶୀତ ଯେହି । ତୋତେ ନ ବାଧିବେଟି କେହି ।
ଚୌଷଠି ରୋଗ ସେହି ନାମ । ଦୟା କରିବେ ସେହି ଜାଣ ।
ରୋଗ ବ୍ୟାଧିହିଁ ନ କରିବ । ଦେହ ତୋ କଞ୍ଚା ହୋଇଥିବ ।
ନିଦ୍ରା ଭୟଟି ତୋ ଶରୀର । ତୋ ଦେହୁଁ ହୋଇବେଟି ଦୂର ।
ରାତ୍ର ଦିବସ ନ ଜାଣିବୁ । ଯାହା ଯାଚ୍ଛିଲେ ତୁ ପାଇବୁ ।
ତୋତେଟି ନ ଦେଖିବେ କେହି । ତୁହି ଦେଖିବୁ ସର୍ବ ଦେହି ।
ପବନ ଯେମନ୍ତ ବହୁଛି । ତୋ ରୂପ ନ ଦିଶିବ କିଛି ।
ତୁହିଟି ସେହିରୂପ ହେବୁ । ଯେବେ ତୁ ଯେ ରୂପ ଚିନ୍ତିବୁ ।
ବାଳକ ରୂପକୁ ଯାଚ୍ଛିଲେ । ବାଳକ ରୂପ ହେବୁ ଭଲେ ।
ବୃଦ୍ଧ ରୂପକୁ ଇଚ୍ଛା ଯେବେ । ବୃଦ୍ଧରୂପ ହୋଇବୁ ତେବେ ।
ନବଯୁବାକୁ ଇଚ୍ଛା ଯେବେ । ସେ ରୂପ ହୋଇବୁ ତୁ ତେବେ ।
ସେ ନାମ ଜାଣିଥିଲେ ତୁହି । ଯେତେ ରୂପ ଯାଚ୍ଛିଲେ ହୋଇ ।
ସେ ନାମ ଏମନ୍ତ ମହିମା । କିସ କହିବା ତାର ସୀମା ।
ସେ ନାମେ ଭକ୍ତଟି କର । ଯେବେ ରହିବୁ ଏ ଶରୀରେ ।
ଭକତ ଯେବେ ତୁ କରିବୁ । ତୋତେ କହିବି ମୁହିଁ ସବୁ ।
ଦେଶ ଅକାଶ ଶୂନ୍ୟ ଥାଇ । ସେ ଭାବେ ରହ ମୁଁ କହଇ ।
ଦେଖ ଏ ଦୃଷ୍ଟି ଘୋଟିଅଛି । ତୋତେ ହେଁ କାହିଁ ନ ଛାଡ଼ୁଛି ।
ତୁହିଟି ସେହିଭାବେ ରହ । ତେବେ ରହିବ ପିଣ୍ଡ ଦେହ ।
ଦେଖ ଏ ପବନ ବହୁଛି । ସକଳ ସମାନ ଦେଖୁଛି ।

ତୁହଟି ସମାନ ଦେଖିବୁ । ଉତ୍ପତ୍ତି ପ୍ରଳୟ ନୋହିବୁ ।
ଦେଖ ଏ ଅଗ୍ନି ସର୍ବ ଖାଇ । ପାପ ପୁଣ୍ୟହିଁ ଛାର ନାହିଁ ।
ତୁହଟି ଏହି ଭାବ ଧର । ପାପ ପୁଣ୍ୟକୁ ନାହିଁ ଡର ।
ଜଳ ଯେହ୍ନେ ସମ ଦେଖିବୁ । ସ୍ୱର୍ଗ ନରକ ନ ମାନିବୁ ।
ଦେଖ ପୃଥିବୀ ରହିଅଛି । ସକଳ ସମାନ ଦେଖୁଛି ।
ତୁହି ସେ ଭାବ ହୃଦେ ଧର । ସକଳ ସହ ସମ କର ।
ମହାଟି ସର୍ବଭୂତେ ଥାଇ । ପର ଅପର ନ ଜାଣଇ ।
ମୃହିଁଟି ଜଗତେ ଘୋଟିଛି । ଧର୍ମ ଅଧର୍ମ ନ ଜାଣୁଛି ।
ତୁହିଟି ସମାନ ଦେଖିବୁ । ଧର୍ମ ଅଧର୍ମ ନ ଗଣିବୁ ।
ସଂସାରେ ଖେଳଘର କଲି । ଧର୍ମ ଅଧର୍ମ ବାନ୍ଧିଦେଲି ।
ନୋହିଲେ ଏ ବୁଦ୍ଧି ସମାନ । ତୁ ଏବେ ଶୁଣ ମୋ ବଚନ ।
ଭକତଭାବ ଶୁଣ ଏହି । ତୋତେ ମୁଁ ଫେଡ଼ି କହିଲଇଁ ।
ଏ ଭାବ ଯେହୁ ନ ଜାଣଇ । ଜନ୍ମ ମୃତ୍ୟୁରେ ଘାଣ୍ଟି ହୋଇ ।
ଧ୍ୟାନସୂତ୍ରରେ କ୍ଳେଶ ଥାଇ । ସେ ଭାବ ନ ଜାଣନ୍ତି କେହି ।
କେ ଅବା ତୀର୍ଥ କରଯାନ୍ତି । କେ ଅବା ଦେବତା ପୂଜନ୍ତି ।
କେ ଅବା ନାନା ଯୋଗ କରି । ମରନ୍ତି ସେ ଭାବ ପାଶୋରି ।
ଏମନ୍ତେ ନାନାମତେ ଭ୍ରମି । ତେଣୁ ଅଜ୍ଞାନୀ ହୋନ୍ତି ପ୍ରାଣୀ ।
ଏଣୁ ତୁ ସର୍ବ କର୍ମ ଛାଡ଼ି । ଭକତଭାବ କର ଦୃଢ଼ ।
ଭକତଭାବେ ତୁ ପଶିଲେ । ସକଳ ଦୂର ହେବ ଭଲେ ।
ନିର୍ମଳ ହୋଇଣ ରହିବୁ । ଚିତ୍ତକୁ ଦୃଢ଼ ତୁ କରିବୁ ।
ମନ ଅନନ୍ଦ ତାହା ଶୁଣି । ବୋଲଇ କମ୍ପବଲ ପୁଣି ।
ଏ ଦେହେ କିଛି କାର୍ଯ୍ୟ ନାହିଁ । ତୋ ଅଙ୍ଗେ ମିଶିବାଟି ମୁହିଁ ।
ଏହି ବୁଦ୍ଧି ମୋରେ ହେଇ । ତୋର ଭକତ ହୃଦେ ଥାଉ ।
ଏ ମସ୍ତ୍ରମଣ୍ଡଳରେ ରହି । କିମ୍ପାଇଁ ଭ୍ରମୁଥିବି ମୁହିଁ ।
ତୁ ଦଶଅବତାର ହେଲୁ । କେତେ କେତେ ମାରି ତାରିଲୁ ।

ଯେତେ ଜନେଣି ବର୍ଣ୍ଣିଥିବ । ତୋ ଭାବ ଅନ୍ତର ନୋହିବ ॥
ଏତେକ ମୁହିଁ ଯେ ମାଗଇ । ତୋ ନିଜ ନାମ ଦିଅ କହି ॥
ଅହେ ସୁଜନ ଜନେ ଶୁଣ । ମହାମଣ୍ଡଳ ଗୀତା ଗୁଣ ॥
ଯାହା ତ ଅନୁଭବ ଥିବ । ଏ ଗୀତା ସ ଧି ସେ ଭେଦିବ ॥
ଏ ଗୀତା ଭେଦ ନ ପାରିଲେ । କି ଜ୍ଞାନ ଲଭିବ ସେ ଭଲେ ॥
ଏହି ଗୀତାରେ ଭକ୍ତି ଅଛି । ଭେଦିଲା ଲୋକ ଜାଣେ କିଛି ॥
ଯେବେ ସେ ସାଧିବ ନିଜର । ଅମର ହେବ ତା ଶରୀର ॥
ନୋହିଲେ କେବେ ଗତି ନାହିଁ । ସଂସାରେ ଥିବ ସେ କପାଇଁ ॥
ଯେହୁ ସେ ନାମ ନ ଚିହ୍ନଇ । ଦୁଃଖରେ ଦୋରେହୋଟି ସେହି ॥
ଯା ଲାଗି ଦେହ ରଖିଅଛି । ତା ନାମ ନ ଭଜେ ଯେ କିଛି ॥
ସଂସାରେ ସୁଖ ସେ ପାଇଲା । ନିଜ ସ୍ୱାମୀକି ଛାଡ଼ି ମଲା ॥
ହେ ପ୍ରଭୁ ଶରଣ ପୋଦର । ମୋ ଅପରାଧ କ୍ଷମାକର ॥
ଏବେ କିଛିତେ ଦୟା ଦେଇ । ଏ ମହାମଣ୍ଡଳେ ନ ଥାଇ ॥
କହଇ ଅରକ୍ଷିତ ଦାସ । ନାହି ତୁ କର ପୀତବାସ ॥

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମାହାମଣ୍ଡଳ ଗୀତା କଥନେ ନାମ ସପ୍ତଦଶୋଽଧ୍ୟାୟଃ । ୧୭ ।



## ଅଷ୍ଟାଦଶ ଅଧ୍ୟାୟ

ଅହେ ଚୈତନ୍ୟ ଶୁଣ ତୁହି । ଅଜ୍ଞାନ ଅଟଇ ଯେ ମୁହିଁ ॥
ଅଜ୍ଞା ନୋହିଲେ ମୁଁ ନ ଯାଇ । ଭୟୁତ କରୁଛି ଗୋସାଇଁ ॥
ତୁମ୍ଭର ଅଜ୍ଞା ଯେବେ ହେବ । ଭୟ କେବେହେଁ ମୋ ନୋହିବ ॥
ମନ ମୁଖରୁ ଏହା ଶୁଣି । ଚିତ୍ତ ନିର୍ମଳ ତାର ଜାଣି ॥
ହେ ମନ ଭୟ କାହିଁପାଇଁ । ଅଜ୍ଞା ମୁଁ ଦେଲି ଯାଅ ତୁହି ॥
ଖଣ୍ଡଗିରିରୁ ବେଗେ ଯାଅ । ଏମନ୍ତ ହୋଇ ତୁହି ରହ ॥
ଲୋଭ ମୁହାଁସ ଛାଡ଼ି ତୁହି । ଏଥିରେ କିଛି କାର୍ଯ୍ୟ ନାହିଁ ॥

ଏକାନ୍ତ ହୋଇଣ ରହିବୁ । କାହାର ସଙ୍ଗ ନ କରିବୁ ।
ଏକାନ୍ତ ହୋଇ ବନେ ରହ । ଅଜ୍ଞା ମୋହର ମାନିଥାଅ ।
ଅଜ୍ଞାରୁ ଦେହ ହୋଇଅଛି । ମାୟାରେ ନ ଜାଣଇ କିଛି ।
ଏବେ ମୁଁ କହୁଅଛି ଶୁଣ । ଅଗେ ଅଜ୍ଞା ପଛେ ଜନମ ।
ସ୍ଥାବର ଜୀବଜନ୍ତୁ ଯେତେ । ଅଜ୍ଞାରୁ ଜନ୍ମିଲେ ସମସ୍ତେ ।
ଅଜ୍ଞାରୁ ବ୍ରହ୍ମା ଯେ ପାଇଲେ । ସକଳ ସୃଷ୍ଟି ସେ ସର୍ଜିଲେ ।
ଅଜ୍ଞାରୁ ବିଷ୍ଣୁ ଯେ ପାଇଲେ । ସକଳ ସୃଷ୍ଟିକି ପାଳିଲେ ।
ଅଜ୍ଞା ଯେ ଶଙ୍କର ପାଇଲେ । ସକଳ ସୃଷ୍ଟି ସଂହାରିଲେ ।
ଅଜ୍ଞାରୁ ଚନ୍ଦ୍ର ସୂର୍ଯ୍ୟ ପାଇ । ରାତ୍ର ଦିବସେ ଭ୍ରମେ ସେହି ।
ଅଜ୍ଞାରୁ ପାଇ ତାରାଗଣ । ଅମ୍ବରେ କରନ୍ତି ଭ୍ରମଣ ।
ଅଜ୍ଞାରୁ ଦେବତା ପାଇଲେ । ଅମୃତ ପାନେ ସେ ରହିଲେ ।
ଅଜ୍ଞାରୁ ଶିବ ଯେ ପାଇଲେ । ଅମର ହୋଇଣ ରହିଲେ ।
ଅଜ୍ଞାରୁ ଇନ୍ଦ୍ର ପାଇକରି । ସ୍ୱର୍ଗେ ହୋଇଛି ଅଧିକାରୀ ।
ଅଜ୍ଞାରୁ ବୃହସ୍ପତି ପାଇ । ସକଳ ଦେବ ଶ୍ରେଷ୍ଠ କହଇ ।
ଅଜ୍ଞାରୁ କୁବେର ପାଇଛି । ଭଣ୍ଡାର ଘର ସେ ଜଗିଛି ।
ଅଜ୍ଞାରୁ ଯମ ଯେ ପାଇଲା । ପାପ ପୁଣ୍ୟକୁ ସେ ବୁଝିଲା ।
ଅଜ୍ଞାରୁ ଗୃହମେଧେ ପାଇ । ପୃଥିବୀ ପାଳୁଛନ୍ତି ସେହି ।
ତେତିଶ କୋଟି ଦେବ ଯେତେ । ଅଜ୍ଞାରେ ଅଛନ୍ତି ସମସ୍ତେ ।
ଅନନ୍ତକୋଟି ଦେବଗଣ । ଅଜ୍ଞାରୁ ଧରଣୀ ଭ୍ରମଣ ।
ଅଜ୍ଞାରୁ ଧ୍ରୁବ ଯେ ପାଇଲେ । ଧ୍ରୁବମଣ୍ଡଳେ ସେ ରହିଲେ ।
ଅଜ୍ଞା ଯେ ମୁନିଗଣେ ପାଇ । ଗୋପରେ ସ୍ତ୍ରୀ ରୂପ ହୋଇ ।
ଅଜ୍ଞାରୁ ବାସୁକୀ ପାଇଣ । ପୃଥିବୀ ବହୁଅଛି ଜାଣ ।
ପୃଥ୍ୱୀ ଜମନ୍ତେ ଦେବଗଣ । ଗୁହାରି କରନ୍ତି ଯେ ପୁଣ ।
ତାଙ୍କର ବଚନ ଶୁଣନ୍ତି । ଦଶ ଅବତାର ହୁଅନ୍ତି ।
ଅଜ୍ଞାରୁ ମୀନରୂପ ହୋଇ । ଶୁଣ ସୁଜନେ ମନ ଦେଇ ।

ଅଙ୍କାରେ କୂର୍ମରୂପଧର । ସଂସାରେ ଖେଳେ ନରହର ।
ଅଙ୍କାରେ ବରାହ ଯେ ରୂପ । ଅବନୀ ଉଦ୍ଧାରଣେ ଧାପ ।
ନରସିଂହ ଅଙ୍କା ରୂପରେ । ହିରଣ୍ୟ ନାଶି ଭାର ହରେ ।
ବାମନ ରୂପ ଅଙ୍କା ପାଇ । ବଳିଙ୍କ ଚୁପିଲେ ଯେ ମହୀ ।
ବଳିଙ୍କ ପାତାଳେ ରଖିଲେ । ଅଙ୍କାରେ ଦ୍ୱାରପାଳ ହେଲେ ।
ଅଙ୍କାରେ ପର୍ଶୁରାମ ରୂପ । ଦୁଷ୍ଟଙ୍କ ହରିଲେ ସେ ଦର୍ପ ।
ଅଙ୍କାରୁ ରାମ ରୂପେ ଜାଣ । ରାବଣ ନାଶିଲେ ଯେ ପୁଣ ।
ଅଙ୍କାରୁ ବଳରାମ ରୂପ । ଅବନୀ ଭାର ହରେ ଦର୍ପ ।
ଅଙ୍କାରେ ବୌଦ୍ଧରୂପ ହେଲେ । ନୀଳଚକ୍ରରେ ବିଜେ କଲେ ।
ଅଙ୍କାରେ କଲ୍କୀରୂପ ହେବେ । ଦୁଷ୍ଟଯାକ ଯେ ସଂହାରିବେ ।
ଏମନ୍ତେ ଦଶ ଅବତାର । ଅବନୀ ଭାର କରେ ସ୍ଥିର ।
ଏମନ୍ତ ଅଙ୍କାର ମହିମା । ମୁଁ କିସ କହିବି ତା ସୀମା ।
ମୁହିଁଟି ଅଙ୍କା ପାଇଅଛି । ସକଳ ଘଟେ ବିହରୁଛି ।
ତୁହିଟି ମୋ ର ସଙ୍ଗେ ଥିବୁ । ଅଙ୍କାକୁ ତୁ ଯେବେ ଜାଣିବୁ ।
ନୋହିଲେ କେବେ ନାହିଁ ଯଶ । ନମଇଁ ଅରକ୍ଷିତ ଦାସ ।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳଗୀତା କଥନେ ନାମ ଅଷ୍ଟାଦଶୋଽଧ୍ୟାୟଃ । ୧୮ ।

---

## ଊନବିଂଶ ଅଧ୍ୟାୟ

ହେ ଅନ୍ତର୍ଯାମୀ ବ୍ରହ୍ମ ତୁହି । ଦୟା କର ହେ ଭବଗ୍ରାହୀ ।
ହେ ଅନ୍ତର୍ଯାମୀ ଚନ୍ଦ୍ର ସୂର୍ଯ୍ୟ । ଦୟା ତୁ କର ଦେବରାଜ ॥
ହେ ଅନ୍ତର୍ଯାମୀ ବ୍ରହ୍ମା ଶିବ । ଦୟା ତୁ କର ମୋତେ ଦେବ ।
ହେ ଜୀବ ପରମ ପୁରାଣ । ଦୟା ତୁ କର ମୋତେ ପୁଣ ।
ହେ ଶୂନ୍ୟ ଶୂନ୍ୟ ଶୂନ୍ୟ ତୁହି । ଦୟା ତୁ କର ମୋତେ କହି ।

ହେ ଜଳ ଅଗ୍ନି ହେ ପବନ । ଦୟା ତୁ କର ମୋତେ ପୂର୍ଣ୍ଣ ।
ହେ ଅନ୍ତର୍ଯାମୀ ହର୍ତ୍ତା କର୍ତ୍ତା । ଦୟା ତୁ କର ସର୍ବଦାତା ।
ହେ ଦେବ ଅନନ୍ତ ମୂରତି । ଦୟା ତୁ କର ପ୍ରାଣପତି ।
ଅହେ ଆକାଶ ମହୀଧର । ଦୟା ତୁ କର ପୀତାମ୍ବର ।
ଏମନ୍ତେ ନାନାରୂପ ଧରି । ଭକ୍ତଙ୍କ କଷଣନ୍ତୁ ତାରି ।
ଭକତ ଅତଙ୍କେ ଡାକିଲେ । ରୂପ ଯେ ଧରୁ ହେତେବେଳେ ।
ନୋହିଲେ ରୂପ ନାହିଁ ତୋର । ହେ ପ୍ରଭୁ ମୋତେ ଦୟାକର ।
ଅହେ ଅଗମ୍ୟ ନାଥ ତୁହି । କରଣ କାରଣ ଯେ ହୋଇ ।
ତୁମ୍ଭ ବ୍ୟତୀତ ମୋତେ କେହି । ତାରଣ କରିପାରେ ନାହିଁ ।
ମୋ ମନ ଜପିଛି କରିରୁ । ଏ ସ୍ଥାନ ବେଗେ ଛଡ଼ାଇରୁ ।
ତୁମ୍ଭର ଦୟା ଯେ ନୋହିଲେ । ଏ ସ୍ଥାନ ନ ଛାଡ଼ଇ ଭଲେ ।
ତୁହି ପ୍ରସନ୍ନ ହେଲେ ବିନା । ସେ ଭାବ ନ କର ଭାବନା ।
ତେବେ ମୁଁ ଯୁଗେ ଯୁଗେ ଥିବି । ନୋହିଲେ ଏ ଦେହ ଛାଡ଼ିବି ।
ହେ ପ୍ରଭୁ କର୍ତ୍ତା ଯେ ପୁରୁଷ । ନମଇ ଅଚ୍ୟୁତ ଦାସ ।
ଅହେ ସୁଜନମାନେ ଶୁଣ । ଏ ଗୀତ କଲି ମୁଁ ବଖାଣ ।
ମୂର୍ଖପଣରେ ଏହା କଲି । ଏ ଦୋଷ ତୁମ୍ଭଙ୍କୁ ମାଗିଲି ।
ଅମୃତ ପ୍ରାୟ ଗୀତାରସ । ସୁଜନେ ଏହାଭାବେ ବସ ।
ଏ ଗୀତା ଭେଦ ଯେ ରସିବ । ଜନ୍ମ ମୃତ୍ୟୁକୁ ସେ ଜିଣିବ ।
ଅକ୍ଷୟ ପିଣ୍ଡ ସେହୁ ଜାଣ । ପ୍ରଳେ ନ ଲଭିବ ପ୍ରାଣ ।
ନୋହିଲେ କେଉଁ ଗତି ନାହିଁ । ଏ ଭାବ ଯେତେବ ନ ଜାଣଇ ।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା କଥନେ
ନାମ ଊନବିଂଶୋଽଧ୍ୟାୟଃ । ୧୯ ।



## ବିଂଶ ଅଧ୍ୟାୟ

ଅହେ ଚୈତନ୍ୟ ଦୟା କର । ସପ୍ତାଙ୍ଗ ଯୁଗର ସାଗର ।
ଏହା ଶୁଣିବାକୁ ମୋ ମନ । ପୃଚ୍ଛଇ ତୁମ୍ଭ ପାଦେ ପୁଣ ।
ମନ ମୁଖରୁ ଏହା ଶୁଣି । ସପ୍ତାଙ୍ଗ ଯୋଗେ କହେ ପୁଣି ।
ଚନ୍ଦ୍ର ସୂର୍ଯ୍ୟ ଜୀବ ପରମ । ଏ ଦୁଇ ଜଣଙ୍କର ଗୁଣ ।
ଜୀବ ପରମ ଦୁହେଁ ହୋଇ । ଦେହକୁ ଧରିଛନ୍ତି ସେହି ।
ଓଁକାର ଚନ୍ଦ୍ର ସୂର୍ଯ୍ୟ ହେଲେ । ନାସିକା ପଥେ ବହଇଲେ ।
ବାମ ପୁଡ଼ାରେ ଯେବେ ବହୁ । ଜୀବ ଚନ୍ଦ୍ର ଟି ସେ ବୋଲଇ ।
ଡାହାଣି ପୁଡ଼ାରେ ବହୁଲେ । ପରମ ସୂର୍ଯ୍ୟ ଅଟେ ଭଲେ ।
ଦୁଇଦଣ୍ଡ ଯେ ବାମେ ବହୁ । ପୁଣି ସେ ଦକ୍ଷିଣକୁ ଯାଇ ।
ଦ୍ୱ ଦଣ୍ଡ ଦକ୍ଷିଣ ପୁଡ଼ାରେ । ଓଲଟ ପାଲଟ ବହଇରେ ।
ଦକ୍ଷିଣ ପୁଡ଼ାରେ ବହୁଲେ । ସ୍ନାନ ଭୋଜନ କର ଭଲେ ।
ନାନାଦି ଦ୍ରବ୍ୟ ତୁ ଭୁଞ୍ଜିବୁ । ନିରୋଗୀ ଶରୀର ଧରିବୁ ।
ସୂର୍ଯ୍ୟଙ୍କ ତେଜ ଲଗି ଜାଣି । ଆହାର ପଚେ ତତକ୍ଷଣି ।
ଆହାର ପାକ ଯେବେ ହୋଇ । ରୋଗଟି କେବେ ନ ପଶଇ ।
ସୂର୍ଯ୍ୟ ଉଇଁବା ଯେତେବେଳେ । ନିଦ୍ରାକୁ ଜାଗିଥିବୁ ଭଲେ ।
ଏ ଦୁଇ ଦଣ୍ଡରେ ନ ଶୋଇ । ଚେତେ ରଖିବୁ ତୋର ଦେହୀ ।
ରବି ଶନି ଗୁରୁ ମଙ୍ଗଳ । ଏ ଚାରି ବାର ସୂର୍ଯ୍ୟ ସ୍ଥଳ ।
ଏ ଚାରିବାରେ ସ୍ନାନ କର । ଜନ୍ମ ମୃତ୍ୟୁକୁ ତୁ ନ ଡର ।
ବାମ ପୁଡ଼ାରେ ବହୁଥିଲେ । କିଛି ନ ଖାଅ ତୁହି ଭଲେ ।
ଚନ୍ଦ୍ରମା ଶୀତଳ ଅଟଇ । ଆହାର ପାକ ଯେ ନୁହଇ ।
ଆହାର ପାକ ଯେ ନୋହିଲେ । ନାନା ରୋଗଟି ହୁଏ ଭଲେ ।
ତେଣୁ ଅଳପେ ନାଶ ଯାଇ । ତାକୁ ନ ରଖି ପାରେ କେହି ।
ବାମ ପୁଡ଼ାରେ ବହୁଥିବ । ସ୍ନାହାନ କେବେ ନ କରିବ ।
ଏ ଦୁଇ ଦଣ୍ଡରେ ଶୋଇବୁ । ଯୋଗନିଦ୍ରାଟି ତୁହି ଯିବୁ ।

ସୋମ ଶୁକ୍ର ଯେ ବୁଧବାରେ । ସ୍ନାହାନ ନ କର ଏହିଁରେ ॥
ଏହା ଜାଣିଲେ ଅଜାମର । ଏ ତିନିବାର ଚନ୍ଦ୍ରଙ୍କର ।
ସୂର୍ଯ୍ୟଙ୍କ ବାର ହୋଇଥିବ । ଏହୁ ବାରେ ଯେ ଦାଗ ଯିବ ।
ଚନ୍ଦ୍ରଙ୍କ ବାର ହେଉଥିଲେ । ଗଲେଟି ନାଶ ଯାଇ ଭଲେ ॥
ସୂର୍ଯ୍ୟଙ୍କ ବେଳା ହୋଇଥିଲେ । ଚନ୍ଦ୍ର ବାସରେ କେଣେ ଗଲେ ॥
ଶୁଭ ଯେ ବେଳ ଯେ ଅଟଇ । ତେଣେ ଚଳେଟି ଯଶ ପାଇ ।
ଚନ୍ଦ୍ର ସୂର୍ଯ୍ୟଙ୍କୁ ଜିଣିଥିଲେ । ଏ ଦେହ ରଖିବୁଟି ଭଲେ ॥
ଏହାଙ୍କୁ ନିତ୍ୟେ ଜିଣିଥିବୁ । ଦୁଇ ଦୁଇ ଘଡ଼ି ଛାଡ଼ିବୁ ॥
ଏ ଦୁହେଁ ଦେହ ଧରିଛନ୍ତି । ଏହାଙ୍କୁ ଜାଣିଥିବୁ ନିତି ॥
ଉଦେ ଅସ୍ତକୁ ଯଗିଥିବୁ । ତିଳାର୍ଦ୍ଧେ ବଳାଇ ନ ଦେବୁ ।
ଚନ୍ଦ୍ରମା ତେଜ ଯେ ବଳିଲେ । ଜଳ ଘୋଟିବ ତତକାଳେ ॥
ସୂର୍ଯ୍ୟଙ୍କ ତେଜ ଯେବେ ବଳେ । ଅଗ୍ନି ଉଠିବ ଅସମ୍ଭାଳେ ।
ଦୁଇ ଘଡ଼ି ଦୁଇ ବୁଅରେ । ଉଲଟ ପାଲଟ ଯେ କରେ ।
ରୋଗ ବ୍ୟାଧିହିଁ ନ ପଶନ୍ତି । ଅମର ହୋଇ ସେ ରହନ୍ତି ।
ନୋହିଲେ କେବେ ଯଶ ନାହିଁ । ଏହାକୁ ଯେବେ ନ ଜଗଇ ।
ସାତବାରଟି ଯେବେ ଯାଇ । ବାମ ପୁଡ଼ାରେ ତେବେ ରହି ।
ଅଠଦିନେଟି ମୃତ୍ୟୁ ହେବ । ଡାହାଣେ ସେ ଯେବେ ନ ଯିବ ।
ଡାହାଣ ପୁଡ଼ା ସାତବାର । ଯେବେ ବହିବ ସେ ନିକର ।
କେବେଁ ମୃତ୍ୟୁଟି ନ ଘଟିବ । ବାମଭାଗେ ଯେବେ ନ ଯିବ ।
ସାତବାର ଯେ ଲେଉଟାଇ । ମୃତ୍ୟୁକୁ ଜିଣି ସେ ହରଇ ।
ଗଙ୍ଗା ଯମୁନା ସ୍ନାନ କର । କାଳ ମୃତ୍ୟୁକୁ ତୁ ନ ଡର ।
ଏକାବେଳେଟି ସ୍ନାନ କଲେ । କୋଟିଏ ତୀର୍ଥ ଫଳ ମିଳେ ॥
ଚନ୍ଦ୍ର ସୂର୍ଯ୍ୟଟି ଦୁଇ କହି । ଏକା ଓଁକାର ସଙ୍ଗେ ହୋଇ ॥
ଏହା ନ ଯାଣେ ମୂର୍ଖପଣେ । ମିଛେ ଭ୍ରମଇ ଏଣେ ତେଣେ ॥
ନାନା ତୀର୍ଥରେ ସ୍ନାନ କରେ । ଘର ତୀର୍ଥକୁ ସେ ପାଶୋରେ ।

ନାନା ଦଅଙ୍କୁ ପ୍ରକାଶର । ଧର ଦଅଁଙ୍କୁ ଯେ ଯାଣୋର ।
ନାନାଦି ଧ୍ୟାନ ମନ୍ତ୍ର ସ୍ୱରେ । ନିଜ ଦେହ ପାଶେ ର ମରେ ।
ଏକା ଓଁ କାର ଦେଖ ତୁହି । କେତେ ପ୍ରକାର ସେ ବହଇ ।
ଅଙ୍କ ପାଇଣ ସେ ବହୁଛି । ରାତି ଦିବସ ନ ଜାଣୁଛି ।
ଏଣୁ ସେ ମାରଇ ତେଣିକି । ତେଣୁ ସେ ମାରଇ ଏଣିକି ।
ଦଣ୍ଡେ ବିଶ୍ରାମ ତାର ନାହିଁ । ଅଙ୍କକୁ ଶିରେ ବହୁଥାଇ ।
ଅଙ୍କ ହୋଇଲେ ଦେହ ଘଡ଼େ । ମାଟି ପିଣ୍ଡ ଟି ଝଣ୍ଡ଼ପଡ଼େ ।
ଏମନ୍ତେ ଅଙ୍କ ମାନିଛନ୍ତି । ତିଳାର୍ଦ୍ଧେ ବିମୁଖ ନୁହନ୍ତି ।
ଏବେ ସୁମନ ଶୁଣ ତୁହି । ସାତବାରଙ୍କ ଗୁଣ ଏହି ।
ରବିବାରର କଥା ଶୁଣ । କହୁବା ହେତୁକର ଧେନ ।
ଚନ୍ଦ୍ର ସୂର୍ଯ୍ୟ ଯେ ଏକ କର । ତୋଳାଇ ମିଶାଇଣ ଭର ।
ତ୍ରିକୂଟ ସନ୍ଧିରେ ଭରିବୁ । ଜଙ୍ଘାଣି ବାୟୁ ବୁଲାଇବୁ ।
ଏ ଦିନ ସ୍ତ୍ରୀସଙ୍ଗ ନୋହୁ । ନ କର ନ ଛୁଇଁବୁ ତୁହି ।
ତେବେଟି ଏ ଦେହ ରହିବ । ଯମ ଦେଖି ଭୟ କରିବ ।
ସୋମବାରରେ ସ୍ତ୍ରୀସଙ୍ଗ । ରତି କରିବୁ ନାନା ରଙ୍ଗ ।
ଦକ୍ଷିଣା ପୁଡ଼ାରେ ପବନ । ବହୁଥିବ କହୁଛି ଜାଣ ।
ତେତେବେଳେ ରତି କରିବୁ । ତଥି ଲକ୍ଷକୁ ଜାଗିଥିବୁ ।
ମଙ୍ଗଳବାରେ ସ୍ତ୍ରୀସଙ୍ଗ । ହୃଷ୍ଟ କରିବୁ ପରିତ୍ୟାଗ ।
ଏ ବାରେ ପବନ ଜଙ୍ଘାଣି । ତୋଳିବୁ ତ୍ରିକୂଟକୁ ପୁଣି ।
କାଳଗଣଙ୍କୁ ତୁ ଜିଣିବୁ । ତେବେଟି ଏ ଦେହ ରଖିବୁ ।
ବୁଧବାରରେ ବତ କର । ତଥି ବାରକୁ ତହିଁ ଧର ।
ଗୁରୁବାରରେ ସ୍ତ୍ରୀ ତହିଁ । କେବେହେଁ ନ ଛୁଇଁବୁ ତୁହି ।
ନାମକୁ ଚିନ୍ତା କରୁଥିବୁ । ତେବେ ଅଜ୍ରାମରେ ରହିବୁ ।
ଯମ ଦେଖିଣ ଡରିଥିବ । ମୃତ୍ୟୁ ତୋତେ କେବେ ନୋହିବ ।
ଶୁକ୍ରବାରରେ ରତି ତୁହି । କର ହୋ କିଛି ଭୟ ନାହିଁ ।

ଦକ୍ଷିଣ ପୁଡ଼ାରେ ପବନ । ବହିବ ଯେତେବେଳେ ପୁଣ ॥
ସେତେବେଳେଟି ସ୍ତ୍ରୀ ସଙ୍ଗେ । ରତି କରିବୁ ନାନା ରଙ୍ଗେ ॥
ସେ ବୀର୍ଯ୍ୟ ଯାଇ ପଦ୍ମେ ବହ୍ନି । ପୁରୁଷ ଅଙ୍ଗଜାତ ହୋଇ ॥
ଶନିବାରରେ ତୁହି ପୁଣି । ସ୍ତ୍ରୀଙ୍କି ନ ଛୁଇଁବୁ ଜାଣି ॥
ଏ ବାରେ ପବନ ତୋଳିବୁ । ଅବାୟୁ ମଣ୍ଡଳେ ଭରିବୁ ॥
ତେବେ ଅମର ହେବୁ ଜାଣ । ସାତବାରକୁ ଜାଣ ମନ ॥
ଛନିବ ରତି ସ୍ତ୍ରୀ କଡ଼ । ଗୁରୁବାର ପୁରୁଷ ହୋଇ ॥
ଏ ସାତବାର ଜାଣିଥିବୁ । ତିଳାର୍ଦ୍ଧେ ହେଳା ନ କରିବୁ ॥
ହେଳା କଲେଟି କାଳମୃତ୍ୟୁ । ମାରି ନେବଟି ଜାଣ ହେତୁ ॥
ରାତ୍ର ଦିବସ ସାତବାର । ଜଗି ଥିବୁଟି ତୁ ନିକର ॥
ଏ ସାତବାର ଜାଗିଥିଲେ । କେବେହେଁ ନ ମରିବୁ ଭଲେ ॥
ହେ ମନ ଏ ସାତବାରକୁ । ଜଗ ହୋ କହିଲି ତୁମ୍ଭଙ୍କୁ ॥
ନ ଜଗିଲେଟି ଯଶ ନାହିଁ । ଏବେଟି ନିତ୍ୟ ଜାଗ କହି ॥
ନ ଜଗିଲେଟି ନାହିଁ ଯଶ । କହଇ ଅଚ୍ୟୁତ ଦାସ ॥
ଅହେ ସୁଜନମାନେ ଶୁଣି । ସପ୍ତ ଙ୍ଗ ଯୋଗର ବିଧାନ ॥

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳଗୀତା କଥନେ
ନାମ ବିଂଶୋଽଧ୍ୟାୟଃ । ୨ ।

---

## ଏକବିଂଶ ଅଧ୍ୟାୟ

ହେ ମନ ଶୁଣି ଏବେ ତୁହି । ହିଂସାରୁ ଗୋଟି ପ୍ରାପ୍ତ ହୋଇ ॥
ସବୁ ଜୀବ ଜନ୍ତୁଙ୍କ କ୍ରୋଧ । ସହିବୁ ସମ କରି ବୋଧ ।
ଯେ ଅବା ମାଡ଼ ଯେ ମାରିବେ । ଯେ ଅବା ଭର୍ତ୍ସନା କହିବେ ।
ଜୀବଜନ୍ତୁଙ୍କ ହିଂସାମାନ । ସବୁ ବୋଲିବୁ ନାରାୟଣ ।
ବୋଲିବୁ ପ୍ରଭୁ କୋପ ହୋଇ । ନମିବୁ ତାର ପାଦେ ତୁହି ।
ମୋର ଅନ୍ୟାୟ ସେ ଦେଖିଲେ । ତେଣୁଟି ମୋତେ କୋପ କଲେ ।

ଏମନ୍ତ ବୋଲି ମନେ ମନେ । ସର୍ବ ଧନ୍ଦରୁ ସମାଧାନେ ।
ବୃକ୍ଷ ପାଷାଣପରି ସହ । ତେବେ ରଖିବୁ ସିନା ଦେହ ।
ଦେଖ ନାସା ପବନ ବହୁ । ବାସ ଦୁର୍ଗନ୍ଧ ସେ ନିଅଇ ।
ସେହି ପ୍ରକାରେ ତୁ ହୋଇବୁ । ଗନ୍ଧ ଦୁର୍ଗନ୍ଧ ଉପେକ୍ଷିବୁ ।
ଦେଖ କର୍ଣ୍ଣଟି ସର୍ବ ଶୁଣେ । ପାପ ପୁଣ୍ୟଟି ସେ ନ ଗଣେ ।
ଏହି ପ୍ରକାରେ ତୁହି ହୁଅ । ତେବେ ତରିବୁ ମାୟାମୋହ ।
ଦେଖ ଚକ୍ଷୁ ସର୍ବ ଦେଖଇ । ସବ୍ୟେ ଅସବ୍ୟେ ଦୃଷ୍ଟି ଦେଇ ।
ସେହି ପ୍ରକାରେ ତୁହି ହୁଅ । ତେବେ ସସାରେ ସୁଖେ ଥାଅ ।
ଦେଖ ଜିହ୍ୱାଟି ସର୍ବ ଖାଇ । ସ୍ୱାଦୁ ଅସ୍ୱାଦୁ ସେ ବାରଇ ।
ଏହାକୁ ଜାଣି ସମକର । ତେବେ ତରିବୁ ଭବବାର ।
ମିଛ ସତଟି ତୁହି ଜାଣ । ଏ ଦୁହେଁ ଅଟନ୍ତି ସମାନ ।
ଛୁଆଁ ଅଛୁଆଁ ନ ବାରିବୁ । ଏହାକୁ ସମାନ ଜାଣିବୁ ।
ଶଙ୍କୁଡ଼ି ନିଶଙ୍କୁଡ଼ି ଦୁଇ । ସମାନଟି ଦେଖିବୁ ତୁହି ।
ମନ ତୁ କିଛି ନ ବାରିବୁ । ସର୍ବ ସମାନ ତୁ ଦେଖିବୁ ।
ଏକା ଓଁ ଭାବ ସର୍ବ ଘରେ । ଯା ଦେହ ସର୍ବ ଜଗ ହରେ ।
ସ୍ୱାଦୁ ଅସ୍ୱାଦୁ ସେ ବସ୍ତୁର । ନୟନେ ଦେଖି ଶୁଣିକର ।
ସ୍ୱାଦୁ ଅସ୍ୱାଦୁ ନ ବାଛିବୁ । ଏ ଦୁଇ ସମାନ ଦେଖିବୁ ।
ଦେଖ ଓଁ ଭାବ ସର୍ବ ଅଛି । ଏ ଦୁଇ ସମାନ ଦେଖୁଛି ।
ତୁହିଟି ଏହିଭାବେ ରହ । ଓଁ ଭାବ ଧ୍ୱବ ଧେନିଥାଅ ।
କର୍ମ ଅକର୍ମ ଦେଖ ସମ । ଏ ଦୁହେଁ ଅଟନ୍ତି ସମାନ ।
ଶୁଭ ଅଶୁଭ ନ ମଣିବୁ । ଏ ଦୁଇ ସମାନ ଦେଖିବୁ ।
ଭଲ ମନ୍ଦଟି ନାହିଁ ଜାଣ । ଏ ଦୁହେଁ ଅଟନ୍ତି ସମାନ ।
ଦୁଃଖ ସୁଖହିଁ ନ ଗଣିବୁ । ଏ ଦୁଇ ସମାନ ଦେଖିବୁ ।
ଚିନ୍ତା ଅଚିନ୍ତା ତୁ ନ କର । ଏ ଦୁହେଁ ସମାନ ନିକର ।
ଭୟ ଅଭୟ ନ କରିବୁ । ଏ ଦୁଇ ସମାନ ଦେଖିବୁ ।

ସାଧୁ ଅସାଧୁ ତୁ ନ ମଣ । ଏ ଦୁହେଁ ଅଟନ୍ତି ସମାନ ।
ଧର୍ମ ଅଧର୍ମ ନ ବାଛବୁ । ଏ ଦୁଇ ସମାନ ଦେଖିବୁ ।
ପାପ ପୁଣ୍ୟ ତୁ ନ ବିଚାର । ଏ ଦୁହେଁ ସମାନ ଜାଣର ।
ସ୍ୱର୍ଗ ନରକ ନ ବାଛବୁ । ଏ ଦୁଇ ସମାନ ଦେଖିବୁ ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନି । ଏ ତିନି ଏକ ବୋଲି ଜାଣି ।
ବ୍ରହ୍ମା ବିଷ୍ଣୁ ଶିବଟି ଜାଣ । ଏ ତିନି ଏକ ବୋଲି ଗଣ ।
ଜଳ ପବନ ଅଗ୍ନି ଯେତୁ । ଏ ତିନି ଏକଅଙ୍ଗ ହୋଇ ।
ଏତା ଓଁକାର ସର୍ବ ଜାଣ । ଭିନ୍ନ ଭିନ୍ନଟି କରେ ପୁଣ ।
ଲୀଳା ନିମନ୍ତେ ଭିନ୍ନହୋଇ । ଯା ମାୟା କେହୁ ନ ଜାଣଇ ।
ନବଦ୍ୱାରେ ସେ ବିହରିଲ । ଖିଞ୍ଚିକୁ ଖିଞ୍ଚା ଯେ ଗୃହିଲ ।
ବ୍ୟୋମ ବ୍ୟୋମକେ ବିହରଇ । ଅନନ୍ତ ରୂପ ତାକୁ କହ ।
ଅଜ୍ଞାନ ଶିରେ ବେଢିଅଛି । ଦୁଃଖ ସୁଖହିଁ ପାଉଅଛି ।
ଜନ୍ମିଛି ମନୁଷ୍ୟଟି ସେହୁ । ଏ ଦୁଇ ସମାନ ଅଟଇ ।
ପର ଘରରେ ତୁ ବହୁଛୁ । ଆପଣା ଘର ନ ଜାଣୁଛୁ ।
ଆପଣା ଦେହେ ହେଉଛର । ପର ଘରେରେ ତୁ ବିହର ।
ଏହା ତୁ ଜାଣି ନ ପାରୁଛୁ । ଦେହକୁ ମୋହର ବୋଲୁଛୁ ।
ଓଁ କାର ପରମ ପୁରୁଷ । କହଇ ଅରକ୍ଷିତ ଦାଶ ।
ଅହେ ସୁଜନମାନେ ଶୁଣ । ଘରଘରଟି ଏହୁ ମନ ॥

ଇତି ଶ୍ରୀ ଗନଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା କଥନେ
ନାମ ଏକବିଂଶୋଽଧ୍ୟାୟ । ୨୧ ।

---

ମୁଦ୍ରାକର—ଶ୍ରୀ ଦାଶରଥି ଦାସ, ଦାଶରଥି ପ୍ରେସ, କଟକ—୨
୧୯୫୮

